# କଥାକୁ ନଥା

ବିନୋଦିନୀ ପାତ୍ର

ପ୍ରକାଶକ :
ଉପେନ୍ଦ୍ର କୁବେର ପବ୍ଲିକେଶ୍ୟାନସ୍
ମଲ୍ଲୀକାଶପୁର, ମୋତିଗଞ୍ଜ, ବାଲେଶ୍ୱର

# କଥାକୁ ନଥା


| | |
|---|---|
| ଲେଖିକା | ବିନୋଦିନୀ ପାତ୍ର<br>ପ୍ରାଧ୍ୟାପିକା, ଇଂରାଜୀ ବିଭାଗ<br>ରମାଦେବୀ କଲେଜ, ଭୁବନେଶ୍ୱର |
| ପ୍ରଥମ ପ୍ରକାଶ | ନଭେମ୍ବର, ୧୯୯୮ |
| ପ୍ରଚ୍ଛଦ, ଅଳଂକରଣ ଓ ମୁଦ୍ରଣ | ପ୍ରିଣ୍ଟେକ୍ ଭିଜନ୍<br>ଶହୀଦ ନଗର, ଭୁବନେଶ୍ୱର |

ମୂଲ୍ୟ : ପଚିଶ ଟଙ୍କା ମାତ୍ର




## KATHA KU NATHA


| | |
|---|---|
| Wirter | **BINODINI PATRA** |
| Published by | **U. K. Publications**<br>Mallikashpur<br>P.O. - Motiganja<br>Dist. - Balasore |
| Designed and Printed at : | **Printek Vision**<br>447, Shahidnagar<br>Bhubaneswar-7 |

Price : **Rs. 25/-** Only

# କୃତଜ୍ଞତା

ମୋର ପ୍ରଥମ ଶିଶୁ କବିତା ସଂକଳନ 'କୁନାପାଇଁ ଗୀତ'ର ସଫଳ ପ୍ରକାଶନ ପରେ ବହୁବନ୍ଧୁ, ଶିଶୁ ସାହିତ୍ୟିକ ଏବଂ ଓଡ଼ିଆ ସାହିତ୍ୟ ଜଗତର ବିଶିଷ୍ଟ ବ୍ୟକ୍ତିମାନେ ଶିଶୁ କବିତା ଏବଂ ଶିଶୁ ସାହିତ୍ୟ ସୃଷ୍ଟି କରିବାକୁ ମୋତେ ବାରଂବାର ପରାମର୍ଶ ଦେଇଛନ୍ତି । ଏହି ପରାମର୍ଶ ମୋ ଭିତରେ 'କଥାକୁ ନଥା' ର ସୃଜନ ପାଇଁ ଅନୁପ୍ରେରଣା ସୃଷ୍ଟି କରିଥିଲା । ଆଜିର ଏହି ପ୍ରକାଶନ ସେହି ଅନୁରୋଧପୂର୍ଣ୍ଣ ପ୍ରୋତ୍ସାହନର ଦୃଶ୍ୟମାନ ପରିପ୍ରକାଶ । ସେହି ସମସ୍ତ ବନ୍ଧୁ, କବି ଏବଂ ସାହିତ୍ୟିକଙ୍କୁ ଏହି ଅବସରରେ ମୁଁ ସପ୍ରେମ ସ୍ମରଣ କରୁଛି ।

ପୁସ୍ତକଟିର ପ୍ରସ୍ତୁତି କାଳରେ ତ୍ରୁଟିବିଚ୍ୟୁତି ସଂଶୋଧନରେ ପରାମର୍ଶ ଦେଇଥିବା କବିବଂଧୁ ଏବଂ ପ୍ରବୀଣ ଶିଶୁ-ସାହିତ୍ୟିକ ଶ୍ରୀଯୁକ୍ତ ଶଶିଭୂଷଣ ବିଶ୍ୱାଳ ଏବଂ କବି ଶ୍ରୀଯୁକ୍ତ କମଳାକାନ୍ତ ପଣ୍ଡାଙ୍କୁ ମୋର ସଭକ୍ତି କୃତଜ୍ଞତା ଜଣାଉଛି ।

ଶିକ୍ଷାବିତ୍, କବି ତଥା ଗବେଷକ ଡଃ ମନ୍ମଥ କୁଣ୍ଡୁଙ୍କୁ ଏହି ପୁସ୍ତକ ପ୍ରକାଶନରେ ବହୁବିଧ ସହାୟତା କରିଥିବା କାରଣରୁ ମୋର ସପ୍ରେମ ସାଧୁବାଦ ଜଣାଉଛି । ଏଥିସହିତ ଶିଶୁସାହିତ୍ୟ ସୃଷ୍ଟିକରିବା ପାଇଁ ଚିରନ୍ତନ ଦୃଶ୍ୟମୟ, ଭାବମୟ ଏବଂ ଶବ୍ଦମୟ ପୋଷଣ ଯୋଗାଉଥିବା ମୋର ଦୁଇ ପୁଅ ପୁପୁ (ସନ୍ଦୀପ ନାରାୟଣ) ଏବଂ କିଟି (ସୁମିତ ଶଂକର)ଙ୍କୁ ଏ ଅବସରରେ ମୋର ସସ୍ନେହ ଶୁଭେଚ୍ଛା ଜଣାଉଛି ।

ପୁସ୍ତକଟିର ସଫଳପ୍ରକାଶନ ଏବଂ ତ୍ରୁଟି ଶୂନ୍ୟ ମୁଦ୍ରଣ ନିମନ୍ତେ ମୁଁ ପ୍ରିଣ୍ଟେକ୍ ଭିଜନ୍ ତଥା ଶ୍ରଦ୍ଧେୟ ଲୁଲୁଙ୍କୁ ଅନ୍ତରର ସାଧୁବାଦ ଜଣାଉଛି ।

— ଲେଖିକା



ଓଡ଼ିଆ ଭାଷା କହୁଥିବା, ଓଡ଼ିଆ ଭାଷା ଶିଖୁଥିବା, ଓଡ଼ିଆ ଜାତିକୁ ଭଲପାଉଥିବା ସମସ୍ତଙ୍କ ଉଦ୍ଦେଶ୍ୟରେ ଏକ ସାରସ୍ୱତ ଉପହାର ସ୍ୱରୂପ **'କଥାକୁ ନଥା'**, ସେଇମାନଙ୍କ ହାତରେ ... ... ... ...

—ଲେଖିକା

# ସୂଚୀପତ୍ର





# କଥାକୁ ନଥା



ଚିଲ ତ ଚିଲ ଶଙ୍ଖଚିଲ
ଦେଖିଲେ ବଡ଼ ଶୁଭ,
ବଣି ତ ବଣି ଯୋଡ଼ି ବଣି
ଅନୁକୂଳରେ ଲାଭ ।୧।



ଫଳ ତ ଫଳ ନାରିକେଳ
କଳସୀ ମୁହେଁ ଥିଲେ,
ଜଗତଜିତା ହୋଇବ ଦେଖି
ଶୁଭକାମରେ ଗଲେ ।୨।

ମରିଚ ଲେମ୍ବୁ ଝୁଲାଇ ଦେଲେ
ନୂଆ ଦୋକାନ ଘରେ,
ଗରାଖ ଭିଡ଼, ହୁଅଇ ବଡ଼,
ବିକା କିଣା ବଜାରେ ।୩।



କୋଳ ତ କୋଳ, ମା'ର କୋଳ
ବସିଲେ ଦୁଃଖ ସରେ,
ବାଳଗୋପାଳ ଯଶୋଦା କୋଳେ
ଦେଖିଲେ ମନପୂରେ ।୪।

ଯୋଡ଼ି ତ ଯୋଡ଼ି, ଗାଈ ବାଛୁରୀ
ଦେଖି କାମକୁ ଗଲେ,
ସକଳଇଚ୍ଛା ପୂରଣ ହେବ,
ସଫଳ ହେବ ଭଲେ ।୫।



ଦେବୀ ତ ଦେବୀ ଦୁରୁଗା ଦେବୀ
ଧରିଲେ ତାଙ୍କ ନାଆଁ
ହୁଏ ସୁଗମ ଅଡୁଆ କାମ,
ବଇରି ହୁଏ ଛାନିଆ ।୬।



ଦେବ ତ ଦେବ ଅଗ୍ରଦେବ
ସୁମରି ଗଣନାଥ,
ପାଠପଢ଼ାରେ ମନ ଢ଼ାଳିଲେ
ହୋଇବ ବଡ଼ ଚାଟ ।୭।

କଥାକୁ ନଥା ହୋଇଚି ଗୁଛା
ଏସବୁ କାଲୁ କାଲ,
ସତ କି ମିଛ କିଏ କହିବ ?
(ଖାଲି) ବଢ଼ାଏ ମନୋବଳ ।୮।

❖



# ରଜଛୁଟି

ଡହଡ଼ହ ଖରା ତାତି,
ଗୁଳୁଗୁଳି ଗରମ,
ପିଲାଙ୍କ ଇସ୍କୁଲ ଛୁଟି
ଖୁସି ତାଙ୍କ ମରମ ।

ବୁଲିଯିବେ ମାମୁଁ ଘର,
ନଈପଠା ଗୋହିରି,
ତୋଟାବଣେ ଖେଳ ହେବ
କେତେ ଡାଳ ମାଙ୍କୁଡ଼ି ।

ପୋଖରୀ ପହଁରା ହେବ
ନଈଜଳେ ଗାଧୁଆ,
ଖଜୁରୀ ବେତ ବଣରେ
କୋଳି ଖିଆ ବଢ଼ିଆ ।

ନାଲି ଟହ ଟହ ଆମ୍ବ
ଝୁଲେ ପତ୍ର ଗହଳେ,
କୁଢ଼େଇବା ପାଇଁ କଳି
ଗୋଟେ ସେଥୁଁ ଖସିଲେ ।

ନୂଆଲୁଗା ମଣ୍ଡିହୋଇ
ମଣ୍ଡାଖିରି ଚକୁଳି,
ଖାଇ ବରଗଛ ଡାଳେ
ଖେଳିବା ରଜଦୋଳି ।

❖



# ଭାଂଗିଲା ସପନ ମୂଷାଭାଇର



ଗାତୁଆ ମୂଷା, ଗାତୁଆ ମୂଷା,
ଗାଡ଼େଇ କି ଗାତ ଖୋଳି ରଖିଥା ।

ବିଲରେ ପାଚିଛି ସୁନେଲୀ ଧାନ
ଟୁଂକି ଟାଙ୍କି ନେବୁ ହେଉ ଉଛନ୍ନ ।

ଧାନର ଶିଂସାକୁ କାଟିବୁ ବେଗେ,
ଭଣ୍ଡାରେ ସଜାଇ ରଖିବୁ ବାଗେ ।

ଚୁଟିଆ ମୂଷା, ଚୁଟିଆ ମୂଷା,
ଚୁଟ୍ ଚୁଟ୍ କରି ଡେଇଁ ବୁଲୁଥା ।



ଚାଷୀର ମନଟି ଉଡ଼େ ଉଡଲା,
ସୁନା ଫସଲରେ ଭରିଛି ଖଳା ।

ଚୁପ୍ ଚୁପ୍, ଛକି ଛକି, ତୁ ଯିବୁ
ମନ ଇଚ୍ଛା ଧାନ ଟୁଂକି ଖାଇବୁ ।

ଚାଷୀ ଭାଇଟି ମୋ କେଡ଼େ ଚତୁର,
ଚକ୍ ଚକ୍ ତାର କୋଡ଼ିର ଧାର ।

ଯତନେ ତାଡ଼ିଲା ମୂଷାର ଗାତ,
କାଢ଼ିନେଲା ଧାନ ଥାକକୁ ଥାକ ।

ଶଙ୍ଖିବିରାଡ଼ିକି ଶୁଖୁଆ ଦେଇ
ଆଗରୁ ରଖିଚି, ପୋଷା ମନାଇ ।

ଛକି ଛକି ଶଂଖି ଖଳାରେ ଯାଇ,
ଚୁଟିଆ ଧରିଲା ନିଶ ଫୁଲେଇ ।

ଚାଷୀର ପୁଷକୁ ପୁସିର ପୁଷ,
ଗାତୁଆ ମୂଷାର ମନ ବିରସ ।

ଉଜୁଡ଼ା ପଡ଼ିଛି ଭଣ୍ଡାର ତାର,
ଭାଂଗିଲା ସପନ ମୂଷାଭାଇର ।









# ଆ'ରେ ବରଷା ରାଣୀ



ଆଷାଢ଼ ଶ୍ରାବଣେ ବରଷାଧାରା
ଏ ସାଲ ଦେଖିଲା ନାହିଁତ ଧରା ।

ରହିଲୁ କାହିଁ ତୁ ବରଷା ରାଣୀ,
ବାଟ ଚାହିଁ ଆଖି ପାଣି ମଲାଣି ।

ଫାଟିଲାଣି ବିଲବାଡ଼ିର ଛାତି,
ଶୁଖିଲାଣି ଗଛବୃଛଙ୍କ ତୋଟି ।

ଧାନଗଛଟିର ସାଗୁଆ ଧୋତି,
ଶୁଖି ନାଲିରଂଗ ଧରି ଆସୁଛି ।

ଜଗତକୁ କାହୁଁ ମୁଠିଏ ଭାତ,
ଯୋଗାଇବ ଚାଷୀ ଭାଇ ଚିନ୍ତିତ ।

ଝୁମିଝୁମି ଆ' ବରଷାରାଣୀ,
ତୋ ବିନା ପଡ଼ିଛି ବଡ଼ ଭାଳେଣି ।

ଆକାଶେ ତୋ ନୀଳ ପଣତ ମେଲି,
ରୁମୁଝୁମୁ ପାଦେ ଆ'ଲୋ ଚାଲି ।

ତୋ ପରଶ ପାଇ ଧରଣୀରାଣୀ
ସାଗୁଆ ଶାଢ଼ୀ ତା ପିନ୍ଧିବ ପୁଣି ।

ମଲ୍ଲୀଟଗରରେ ସାଜିବ ବେଶ,
ଶୁଖିଲା ମୁହେଁ ତା ଫୁଟିବ ହସ ।

ବଜର ବିଜୁଳି ରୋଷଣି ଧରି,
ଝର ଝର ହୋଇ ପଡ଼ ତୁ ଝରି ।

ନୂଆବୋହୂ ପରି ଜଗତପାଇଁ,
ନୂଆ ସମ୍ଭାବନା ଆ'ଲୋ ନେଇ ।

❖





# ବଗୁଲା ଭାଇ

ବଗୁଲା ଭାଇ, ବଗୁଲା ଭାଇ
ଧୋବଫରଫର କୁରୁତା ନାଇ
ନଈ କୂଳକୁ ତୁ ଆସିବୁ ନାହିଁ
ମୀନ ଖୁଣ୍ଟିବାକୁ ଟକଳା ହୋଇ ।

ଥଣ୍ଟିଆ କୁମ୍ଭୀର ବସିଛି ଜଗି
ନଳୀଗୋଡ଼, ତୋର ଦେବଟି ଭାଂଗି ।
ପାଟ ପୋଖରୀର କଅଁଳାମୀନ
ଖାଇ ପାଲୁଥା ତୋ ଜନମଦିନ ।

ବେଣ୍ଟପୋଖରୀର ଧୋବଲା କଇଁ,
ଢଳଢଳ ଠାଣି ତୁଳନା ନାହିଁ
ନାଡ଼ତଳେ ତାର ମୀନର ଘର,
ଥଣ୍ଟ ପାଇବନି ସେଠିକି ତୋର ।

ନଈରେ ମାତିଛି ବାଳିଆପଟା,
ଦାନ୍ତ ଭାରିକ ତା କରତ ଗୋଟା,
ହାଉଁ ହାଉଁ କରି ଉଛାଳି ଜଳ,
ମୀନ ଛାଣି ନେଇ କରେ କବଳ ।

ମୀନ ପାଇଁ ତୋର ମନ ଟକଳା,
ଭାଗ କିଏ ବସାଇବଟି ପରା,
ଏକେଲା ବସିଛୁ ସେଇଥି ପାଇଁ ?
ସାଂଗ ସାଥୀ ଜଣେ କେହି ବି ନାହିଁ ।

ଆମ ବଇଠକ କାଚ ଥାକରେ
ମୀନକୁ ଧରି ରହିଚୁ ଥଣ୍ଟରେ ।
ଯାହାକୁ ଯା ପାଇଁ ଗଢ଼ିଛି ବିହି,
ଥଣ୍ଟଟି ତୋର କି ମୀନର ପାଇଁ ?







# କୁଆଁର ପୁନିଅଁ ଜହ୍ନ

ଆକାଶର ଛାତି ଝଲସେଇ ଉଠେ
କୁଆଁର ପୁନିଅଁ ଜହ୍ନ
'ଫୁଲବଉଳରବେଣୀ' ଗୀତ ପାଇଁ
ହେଲେଣି ଝିଅଁ ଉଚ୍ଛନ୍ନ ।

'କଇଁ ଫୁଲ ଘର' କଟା ସରିଲାଣି
କୁଆଁରୀ ହାତରୁ ଏବେ,
ଜହ୍ନମାମୁଁ ଆମ ଅରଚନା ନେବେ
ଚାନ୍ଦଚକଟା ଅରଘେ ।

ଡୁଡୁ, କବାଡ଼ିର ଖେଳ ପାଇଁ ଦଳ
ଗଢ଼ା ହୋଇଛି ଆଗରୁ,
କୁଆଁର ମାନଙ୍କ କିତିକିତି ଡାକ
ଶୁଭେ ଗାଁ ପଡ଼ିଆରୁ ।

କୁଆଁର ପୁନିଅଁ ଜହ୍ନହେ ତମେ
କୁଆଁର, କୁଆଁରୀ ପାଇଁ
ଦିନ ଥାଉଁ ଥାଉଁ ଉଇଁପଡ଼ କିବା
ରୂପା ରଂଗେ ବେଶ ହୋଇ ।

ଭାଗ୍ୟର ଦେବୀ ଲକ୍ଷ୍ମୀମାଆଙ୍କ
ହୁଏ ପୂଜା ଆରାଧନା,
ଘରେ ଘରେ ଆଜି ଖୁସି ମଉଛବ,
ଉପାସ ବ୍ରତ ପାଳନା ।



ନୂଆଲୁଗା ପିନ୍ଧି, ଲିଆନଡିଆର
ଚାନ୍ଦଚକଟା ଖାଇ,
ପ୍ରାଣମିତଣୀଏଁ 'ଚାନ୍ଦ' ବସୁଛନ୍ତି
ଥଟ୍ଟାପରିହାସ ହୋଇ ।

ହୁଳହୁଳି, ଶଙ୍ଖ ଶୁଭିଲାଣି ପରା
ପୁଚି ଖେଳିଲେଣି ଝିଏ
ସବୁରିଙ୍କୁ ମିଳୁ ମନଲାଖି ସାଥୀ,
ବିମଳ ଜୀବନଟିଏ ।

❖



# ଗାଁ କୁ ଚାଲ

ଗାଁଟି ମୋର ଭାରି ସୁନ୍ଦର
ସୁବର୍ଣ୍ଣରେଖା କୂଳେ,
ବାଲେଶ୍ୱରର ଉପକଣ୍ଠରେ
ବଂଗଳାପାଖ କୋଣେ ।

ଶାଢ଼ୀର ଧଡ଼ି ପରିକା ପଡ଼ି
ନଈଟି ବହେ ଧୀରେ,
ବରଷାଦିନେ ଦି'କୂଳଖାଇ
ବଢ଼ିର ସୁଅ ଝରେ ।

ଶ୍ରାବଣେ ଦିଶେ ସାରା ଗାଆଁଟା
ସବୁଜ ଟାପୁପରି
ଗୋହିରି ଧାରେ ନଡ଼ିଆ ଗଛ
ଠିଆ ପ୍ରହରୀ ସରି ।

ଶରତେ ଦିଶେ ନଈ କୂଳଟି
କାଶତଣ୍ଡୀରେ ତୋରା,
ମଗୁଶୀରରେ ଖଳାଖମାର
ସୁନାଫସଲେ ଭରା ।



ଗାଁ ଦାଣ୍ଡରେ ଗଙ୍ଗଶିଉଳି
ବଉଳପଡ଼େ ଝରି,
ରାଜା, ମନ୍ତିରୀ ଦରଶନରେ
ଅରଘ ଦେବା ପରି ।

ପୋଖରୀ ଜଳେ କମଳଖେଳେ
ଭଅଁର କରେ ନାଟ,
ଅମଳପରେ କିଆରି ଧାରେ
ଗାଈ ଗୋରୁଙ୍କ ହାଟ ।

କୁନିବୋହୂଟି ସକାଳୁ ଉଠି
ଗୋବର ପାଣି ଛାଟେ,
କାଖେ ଗଗରି ତୁରିତେଧରି
ଧାଏଁ ନଈର ତୁଠେ ।

ଚାହାଳିଘରୁ କଅଁଳ କଣ୍ଠୁ
ଶୁଭେ ପ୍ରାର୍ଥନା ଗୀତ
ଗାଁକୁ ଚାଲ, ପାଇବସୁଖ
ଡାକେ ମାଟିର ମାତ ।

# ହଳଦୀ ବସନ୍ତ

ହଳଦୀ ବସନ୍ତ, ହଳଦୀବସନ୍ତ
କେଉଁ ରାଇଜେ ତୋ ଘର ?
ଏଡ଼େ ସୁନ୍ଦରିଆ କରି ଗଢ଼ିଅଛି
ତୋତେ କେଉଁ କାରିଗର ?

ଚଞ୍ଚୁରେ ଦେଇଚି ଚହଟ ଅଳତା
ଆଖିରେ କଜ୍ଜ୍ୱଳ ଗାର ।
ଗୁରୁ ଗୁରୁ ହଳଦିଆରଂଗେ ରଂଗା
ଚକମକ ଦେହ ତୋର ।

ଆମ୍ବଗଛ ଡାଳେ କନକନ ହୋଇ
ଫୁର୍ ଫୁର୍ ଯାଉ ଉଡ଼ି,
ମୋ ନୂଆବୋଉର ହଳଦିଆପାଟ
ପରି ଡେଣା ଦୁଇ ଝାଡ଼ି ।

ପାଦ ଦୁଇଟିରେ ଅଳତାର ରଂଗ
କିଏ ଦେଲା ତୋତେ ମାଖି ?
କେଡ଼େ ସଜଳ ତୋ କଳାଆଖି ଦୁଇ
ମନ ରହେ ତୋଠିଁ ଲାଖି ।

ଥିରି ଥିରି ତୋର କଅଁଳ କଣ୍ଠରେ
ଆଣୁ ତୁ ଅତିଥି ଡାକି,
ଗାଧୋଇ ପାଧୋଇ ସଜବାଜ ହୋଇ
ରହିଛୁ କି ତାଙ୍କୁ ଟାକି ?

ଝରକା ବାହାରେ ଝାମ୍ପୁରା ଗଛରେ
ସକାଳୁ ତୁ ରାବୁଥାଉ ।
କେତେବେଳେ କେଉଁ ଶୁଭଖବରଟି
ଦେବାକୁ ତୁ ଦେଖା ଦେଉ ।

ତୋତେ ଦେଖିଲେ ମୋ ମନଟି ଉଚ୍ଛୁଳେ
କେତେ କେତେ ଆଶାନେଇ ।
ସାଙ୍ଗ ସାଥୀ ଜଣେ ଆସିଯିବ ପରା
ବସିଛି ମୁଁ ବାଟ ଚାହିଁ ।

ବାପାବୋଉ ମୋର ଅଫିସିକି ଗଲେ
ଏକା ଘରେ ମୋତେ ଛାଡ଼ି,
ସାଥୀ ହୋଇ ଦିହେଁ ଖେଳିବା ଆ'ରେ
ଝଅଟ ମୋ ପାଶେ ଉଡ଼ି ।







# କଣ୍ଢେଇ ବୋହୂ



ହୁକୁମ୍ ଭାଇ, ହୁକୁମ୍ ଭାଇ, ହୁକୁମ୍ ଭାଇ,
ସବାରି ବାଲାଏଁ କଣ୍ଢେଇ ବୋହୂକୁ ନିଅନ୍ତି ବୋହି ।

ନାଲିଆ ପାଟ, ଗହଣା ପିନ୍ଧି
ରଂଗ ସିନ୍ଦୂର ନାଇ
କଣ୍ଢେଇ ଝିଅ ସାଜିଛି ବୋହୂ
ଯାନି ଯଉତୁକ ନେଇ ।



ବିଦାୟ ବେଳେ କୁନି କାନ୍ଦୁଚି
ସମୁଦି ହାତ ଧରି,
ଝିଅକୁ ମୋର ଦେବନି ଗାଳି
ବଡ଼ ସେ ସୁକୁମାରୀ ।

ହୁକୁମ୍ ତାଲ, ହୁକୁମ୍ ତାଲ,
ଡାକେ ସବାରି ବାଲା,
ନିଶ ଫୁଲେଇ ପଛେ ଚାଲିଚି
ସମୁଦି ଭୋଳାଭାଲା ।

ଚୁନି, ମୁନିଏଁ,　　　ମିଳି ସଭିଏଁ
ଦିଅନ୍ତି ହୁଳ ହୁଳି,
ବୁଦାମୂଳରୁ　　　କେଁ କଟରର
ବେଙ୍ଗୁଲି ଛାଡ଼େ ରଡ଼ି ।

ବଣ ବିଲର　　　ଅରମା ବାଟ
ଯେଉଁଠି ଆସିହେଲା,
କଳାହାଣ୍ଡିଆ　　　ମେଘଟା କାହୁଁ
ସେଇଠି ବର୍ଷିଗଲା ।

ଆହାରେ ମୋର　　　ଗେହ୍ଲାରତନୀ
କି ହେବ ତୋର ଏବେ ?
ବରଷା ଜଳେ　　　ସମୁଦି, ଝିଅ
ସଭିଏଁ ଭାସିଯିବେ ।

ଶାଶୂ ଘରକୁ　　　ଯାଉଚି ଝିଅ
କୁନିର ଦୁଃଖ ମନ,
ଏଡ଼େ ଟିକିଏ　　　ଝିଅ ତା' ବିନା
କେମିତି କାଟିବ ଦିନ ?



# ମଗୁଶୀର ମାସ

ମଗୁଶୀର ମାସ ବଡ଼ ମଉଜ,
ଧରଣୀ ପିନ୍ଧଇ ସୁନ୍ଦର ସାଜ ।

ବାଡ଼ି, ବଗିଚାରେ ହସଇ ଫୁଲ,
ପନି ପରିବାର ଖସଇ ମୂଲ ।

ବୁଢ଼ୀମା ଧରି ଟୋକେଇ କାଖେ,
ଉଣ୍ଡୁଚି, କୋଶଳା ପଟାଳି ପାଖେ ।

ବାଡ଼ି ବାଇଗଣ, ବେସର ବଡ଼ି,
ସଜନା ଛୁଇଁର ଝୋଳ ହାପୁଡ଼ି ।

ବାପା ବାହାରନ୍ତି ଅମଳପାଇଁ
ଲିପାପୋଛା ଖଳା ମାରୁଛି ଚାଇଁ ।

ଦାଣ୍ଡ ଦୁଆର ଓ ଚଉଁରାମୂଳେ,
ଝୋଟିଚିତା ପଡ଼ି, ଦୀପଟି ଜଳେ ।



ବୋଉ ବାଟିଅଛି ବିରି ଚାଉଳ,
ନଡ଼ିଆ ଛେନାରେ ମିଶାଇ ଗୁଡ଼ ।

ପୁରଭରା ଛୁଞ୍ଚି ପତର ପିଠା,
ଖାଇବାକୁ ଦେବ, ଆହାକି ମିଠା !

ଗଢ଼ିଲାଣି କୁନି ମୁହଁରୁ ଲାଳ,
ଖିରି ପିଠାସବୁ ଖାଇବା ଚାଲ ।

ସଂଜରେ ଭାଉଜ ପଢ଼ିବେ ପୋଥି,
ଶୁଣାଇବେ ଲକ୍ଷ୍ମୀମାଆ କୀରତି ।

ମଗୁଶୀର ମାସ ସାରା ବରଷ
ରହିଲେ ଲାଗନ୍ତା କେଡ଼େ ହରଷ !

# ପରଜା ପତି

ପରଜାପତି ପରଜାପତି
ଫୁଲ ଉପରେ ବସୁ ତୁ ନିତି ।

କେତେ ରଂଗେ ଭରା ଡେଣାଟି ତୋର,
ତୁ ସୁନ୍ଦରକୁ ଫୁଲ ସୁନ୍ଦର ।

ଖାଉ ଥାଉ ନିତି ଫୁଲରୁ ମହୁ,
ମହୁ ଖାଇ କିବା ସୁନ୍ଦର ହେଉ ?

ଛାପି ଛାପିକା ତୋ ରୂପଟି ଦେଖି,
ପାପୁନି ମନଟା ରହିଛି ଲାଖି ।

ପାପୁନିଟା ଆମ ଫୁଲେଇ ହୁଏ,
ବାଡ଼ି ଦେବା ଚିଜ କିଛି ନ ଖାଏ ।

ଯେଉଁ କଥାକୁ ତା' ମନ ଟାଣଇ,
ଭଲ ମନ୍ଦ ତହିଁ ବିଚାରେ ନାହିଁ ।

ଫୁଲସାଥୀ ତୋର, ପତର ସାଥୀ,
ଭଲ ଜିନିଷରେ ରଖୁ ତୁ ମତି ।

ଖରାପ ପାଖକୁ କେବେ ନ ଯାଉ,
ଖରାପ ଚିଜକୁ କେବେ ନ ଛୁଉଁ ।

ପାପୁନିକୁ ସାଂଗ ନେ' ତୁ କରି,
ଭଲ ମନ୍ଦ ତୋଠୁଁ ଶିଖୁ ସେ ବାରି ।

❖



# ବଣରେ ଗଣେଶ ପୂଜା

ଅବଧାନ ହନୁ ପଇତା ଭିଡ଼ି,
ବଣରେ ଗଣେଶ ପୂଜା କରିବାକୁ
ବସିଛି ଅଡ଼ି ।୧।

ବେଙ୍ଗ ମୂଷା ଆଉ ଠେକୁଆ ଆଦି
ଚାଟଗଣେ ପୂଜା ସଜ ଆଣିବାକୁ
କରେ ବରାଦି ।୨।

ରଘୁ ପଧାନର ବାଡ଼ିରେ ପଶି
ଠେକୁଆ ଆଣିଚି ଝୁଡ଼ିଏ ସରିକି
କାକୁଡ଼ି କଷି ।୩।

ମହାନ୍ତି ବାଡ଼ିରୁ ଗୁଣ୍ଡୁଚି ମୂଷା
ଦାନ୍ତେ କାଟି ତୋଳେ ନଡ଼ିଆପଇଡ଼
ଗୋଟାକୁ ଗୋଟା ।୪।

ଇସ୍କୁଲ ବାଡ଼ିରୁ କଦଳୀ କାନ୍ଧି,
ଚେପିଯିବ ବୋଲି ହନୁନିଜେ ଆଣେ
କାନ୍ଧରେ ନଦି ।୫।

ସାରୁ ପତରରେ ପରାତ ଭରି
ବେଙ୍ଗୁଲି ସଜାଡ଼େ ଫୁଲଫଳ ଭୋଗ
ଯତନ କରି ।୬।



କୋଇଲି, ଡାହୁକ, କୁମ୍ଭାଟୁଆର
ଶଙ୍ଖ, ଘଣ୍ଟା, ହୁଳହୁଳିରେ ଉଛୁଳେ
ବଣ ନଗର ।୭।



ଗଣପତି ପାଦେ ଜୁହାର କରି
ବଣଭୂଇଁ ଆମ ଉଜୁଡ଼ି ନ ଯାଉ
କଲେ ଗୁହାରୀ ।୮।

ଖୁଁ ମନ୍ତରରେ ହନୁର ପୂଜା
ସରିଗଲା, ଭୋଗ ରାଗ ଖାଇ ସର୍ବେ
ମାରିଲେ ମଜା ।୯।

❖



# ଆମ୍ବତୋଟା

ସୁନା ସୁରୁଜଟି ଝିଲ୍‌ମିଲ୍,
ଖରାବେଳ ହସେ ଖିଲ୍ ଖିଲ୍ ।

ପଳାଶ ନାଲିଆ ଚହଚହ,
ଚମ୍ପାଫୁଲ ବାସେ ମହମହ ।

ହଳଦୀ ବସନ୍ତ କୁକ୍‌ଟ୍ କୁଁୟ,
କୁମ୍ଭାଟୁଆ ଡାକେ ହୁଁ ହୁଁ ।

ଆମ୍ବ ବଗିଚାରେ ବସିବା ଘଡ଼ିଏ,
ଖରା ବଢ଼ି ଯାଏ ହୁ ହୁ ।

ଆମ୍ବ ଓହଳିଛି ପେଛି ପେଛି,
ପତର ଗହଳେ ଗୁଛି ଗାଛି ।

କୁନାପାଟି ଲାଲ ସରସର,
ବାଡ଼ କଡ଼େ ନସର ପସର ।

ଖେଣ୍ଟାଟିଏ ଧରି କୁନାଦେଲା ମାରି,
ଠପ୍ ଠାପ୍ ଆମ୍ବଗଲା ପଡ଼ି ।

ଧାଇଁ ଗୁଡୁ ଗୁଡୁ କୁନି ଗଲା,
ତରତରେ ଆମ୍ବ ଅଣ୍ଟିରେ ଗୋଟେଇ,
ମାରଡିଆଁ ଚିଲା ମାରି ଦେଲା ।

କୁନା ଅନେଇଛି ହାଁ କରି,
ହାଇଁ ପାଇଁ ତାର ଟକଲା ମନଟି,
କୁନି କାଣ୍ଡ ଦେଖି ଗଲାମରି ।



# ଶୀତ ଭୂତ

ଶୀତଦିନେ ଥରେ, ଥରିଥରି ଡରେ
ପାପୁନି ଆସିଲା ଧାଇଁ,
''ବୋଉ, କାହିଁଗଲୁ, ଜଲ୍‌ଦି ମୋତେଦେଲୁ
ଗୋଧୂଡ଼ିଟିଏ ଘୋଡ଼େଇ ।

ଶୀତ ଭୂତ କାହୁଁ ଧାନକିଆରିରୁ
କୁହୁଡ଼ିଆ ବେଶଧରି
ଧରିବାକୁ ମୋତେ, ଧାଇଁଚି ମୋ'ପଛେ
ଦାନ୍ତ କଡ଼ମଡ଼ କରି ।

ଦେହ ସାରାମୋର ଶୁଖି ଫାଟିଲାଣି
ପାଟିରେ ହେଲାଣି ଘାଆ
ପାଦର ତଳିପା, ଲାଗେ ବଡ଼ ବଥା
ଫାଟିକି କଲାଣି ଆଁ ।

ଠକ୍ ଠକ୍ ହୋଇ, ଦାନ୍ତ ମୋ ବାଜୁଛି,
ଟାଆଁସା ଲାଗୁଚି ବାଳ,
ମାଡ଼ି ବସିଏତେ, ସରି କଲାମୋତେ
ଶୀତର ବହୁତ ବଳ ।''

ବୋଉ ହସି ହସି ମଜାରେ କହନ୍ତି
ଜାଣିଚି ଗାରେଡ଼ି ମୁହିଁ,
ଲୋଡ଼ା ତେଲ ଗିନା, ଚଟକା ପରିବା
ଭୂତ ଛଡ଼େଇବା ପାଇଁ ।

ନେଇ ତେଲଟିକେ ପାପୁନି ଦେହରେ,
ବାଳରେ ଦେଲେ ଲଗେଇ
ତା'ର ଦେହ ପିଠି, ଘଷି ମାଠି ମୁଠି,
ପୋଛି ଦେଲେ ଭଲକରି ।

ଖାଇବାକୁ ଦେଲେ ପରିବା ତିଅଣ
ସାଥିରେ ଗରମ୍ମ ରୁଟି,
ଗରମ ପୋଷାକ ପିନ୍ଧାଇ ଦେଲେ
ମୁଣ୍ଡରେ ପଶମ ଟୋପି ।

ଚିକ୍କଣ ଲାଗିଲା ପାପୁନିର ଦେହ,
ଆରାମ ଲାଗିଲା ତାକୁ
ସଫା ସଫିରହି ଚଟକା ଖାଇଲେ
ତଡ଼ିହେବ ସେ ଭୂତକୁ ।

❖



# ଧୋବ ଫରଫର ବଗୁଲାଭାଇ



ଧୋବ ଫର ଫର ବଗୁଲା ଭାଇ
ବସିଛୁ କାହିଁକି ବରଟି ହୋଇ ?
ଭରାନଈକୂଳେ ମୁହଁ ଫୁଲେଇ ।

ଧୂ ଧୂ ଏଡ଼େ ଖରାଟାଗଲା,
ଦିନେ ତ ବିରସ ଦିଶିନୁ ଭଲା ।
ମୀନଙ୍କ ଗହଣେ ଅଳପ ଜଳେ,
ମାତିଥିଲୁ ଛକାପଞ୍ଝାର ଖେଳେ ।

ଧାରାବରଷାଟା କେଉଁଠି ଥିଲା,
ଢି ଢି, ମେଘ ବରଷି ଗଲା ।
ନଈନାଳ ଜଳେ ପୂରି ଗଲେଣି,
ସେ ପାଇଁ ପଡ଼ିଛି ତୋର ଭାଳେଣି ?



ବଜ୍ର ଘଡ଼ ଘଡ଼ି ବାଇଦଶୁଣି,
ଫକ ଫକ ଡିଏଁ ବେଙ୍ଗୁଲିରାଣୀ,
ଡଗ ଡଗ ହୋଇ ଢମଣା ଭାଇ,
ବେଳ ଉଣ୍ଡି ତାକୁ ଗିଳୁଛି ଯାଇ ।



ଜଳୁଆ ଘାସର ଗହନ ବଣେ,
ଶେଉଳ ଖେଳୁଚି ଛୁଆ ତା' ପଣେ ।
ଏକ ଗୋଡ଼ିକିଆ ଯା' ବାଟ ଚାହିଁ,
ବସିଛୁ ସେ ମୀନ ଯାଇଛି କାହିଁ ?

ଗହୀର ଜଳରେ ଫୁଟିଛି କଇଁ
ମୀନ ଖେଳୁଅଛି ତା' ସାଥେ ଯାଇ ।
ବୃଥା ବାଟ ତାର ଜଗିଛୁ କିଆଁ ?
ଗେଣ୍ଡା, କଙ୍କଡ଼ାଙ୍କୁ ଟୁଙ୍କିବୁ ଯାଆ ।

ଏକ ନ ମିଳିଲେ ଆରେକ କାମେ
ଲାଗିଥିଲେ ସୁଖ ମିଳେ ଜୀବନେ ।

